୧୯୭୭ ମସିହାରେ କେନ୍ଦ୍ର ସରକାରରୁ ଶିଶୁ ସାହିତ୍ୟ ପ୍ରତିଯୋଗିତାରେ ପୁରସ୍କାରପ୍ରାପ୍ତ

# ନଈ ବହିଲା

ଲେଖକ
ଶ୍ରୀ ଦୁର୍ଗା ପ୍ରସାଦ ପଟ୍ଟନାୟକ
ଅଧ୍ୟାପକ, ଚିତ୍ରକଳା
ବନାରସ ହିନ୍ଦୁ ବିଶ୍ୱବିଦ୍ୟାଳୟ, ବାରାଣସୀ

ପ୍ରକାଶକ
'ମନପବନ' କାର୍ଯ୍ୟାଳୟ
କଟକ – ୨

ମୂଲ୍ୟ – ଟ୧.୨୫

# ନଈ ବହିଲା

ପାହାଡ଼ ରଜା ଆଉ ପାହାଡ଼ ରାଣୀ, ଦ'ଜଣଯାକ ଭଲରେ ଥାଆନ୍ତି । ଧନ ଦଉଲତ କାହିଁରେ କ'ଣ । ଦନ ନାଇଁ, ରାତ ନାଇଁ ଚଢ଼େଇମାନେ ଗୀତ ଗାଉଥାଆନ୍ତି । ରାଣୀ ଫୁଲ ପିନ୍ଧିବ ବୋଲି ଗଛ ଲଟି ସବୁବେଳେ ଫୁଲ ଧରି-ଥାଆନ୍ତି । ହରଣ କସ୍ତୁରୀ ଆଣି ଦଏ । ରଜା ରାଣୀ ଖାଇବେ ବୋଲି କେତେ ପ୍ରକାରର ଫଳ ସେଠି—ଆମ୍ବ ଦେଖିବ କ'ଣ, ଜାମୁ ଦେଖିବ କ'ଣ, କଦଳୀ ତ



କାନ୍ଦି କି କାନ୍ଦି । କମଳା ତ ଗଛ ଭାଙ୍ଗି ଥାଏ । ଏତେ ଧନକୁ ଜଗିବାକୁ ବାଘ, ଭାଲୁ ପହରା ଦେଉଥାଆନ୍ତି । ତାଙ୍କ ସାଙ୍ଗକୁ ଆଉ ଥାଆନ୍ତି ପହରା-



ବାଲି ଅଜଗର, ଅହିରାଜ । ରାତି ଖବର ରଖେ ପେଚା । ଦିନ ଖବର ରଖେ କାଉ । ପାହାଡ଼ ରଜା ପାଖେ ପାଖେ ତା ପାତ୍ରମନ୍ତ୍ରୀ ସମସ୍ତେ ବସିଥାଆନ୍ତି ।

ସବୁ ଥାଏ ଯେ, ଖାଲି ଗୋଟିଏ କଥାରେ ଦୁଃଖ । ରଜା ରାଣୀଙ୍କର ପିଲାପିଲି ନ ଥାଆନ୍ତି । ସେଥିଲାଗି ସେମାନେ ସୂର୍ଯ୍ୟ ଦେବତାଙ୍କୁ ପୂଜା କଲେ । ପୂଜା କରୁ କରୁ କେତେ କାଳ ବିତିଗଲା । ଶେଷକୁ ସୂର୍ଯ୍ୟ ଦେବତା ତାଙ୍କ ଗୁହାରି ଶୁଣିଲେ ।

ଦିନେ ରାତି ହୋଇଛି, ସମସ୍ତେ ଶୋଇ ପଡ଼ିଛନ୍ତି, ଆକାଶରେ ବାଇଦ ବଡ଼କାଠ ବାଜି ଉଠିଲା । ରଜା ରାଣୀଙ୍କ ନିଦ ଭାଙ୍ଗିଗଲା । ଦେଖିଲେ ଯେ, ମେଘସବୁ ବାଜା ବଜେଇ ଆସୁଛନ୍ତି । ଚାରିଆଡ଼ ଅନ୍ଧାର । ବିଜୁଳି ଆଲୁଅ ଦେଖାଉଛି । ପବନ ସମସ୍ତଙ୍କୁ ବାଟ କଢ଼ାଉଛି । ଯେମିତି ରଜା ରାଣୀଙ୍କ ପାଖ ହେଲା, ସବୁ ମେଘ ଓହ୍ଲେଇଲେ । ପାହାଡ଼ ରାଣୀ କୋଳରେ ପିଲାଟିଏ ରଖି ଦେଇ ଫେର ଉଡ଼ି ଚାଲିଗଲେ ।

ସକାଳୁ ଚାରିଆଡ଼େ ଚହଳ ହୋଇଗଲା ଯେ, ପାହାଡ଼ ରଜାର ଝିଅ ହୋଇଛି । ଦେଖି ଆନନ୍ଦ । ଗଛ ଲତା ସବୁ ଫୁଲ ଢାଳି ପକେଇଲେ, ଚଢ଼େଇ ଗୀତ ଗାଇଲେ, ଜନ୍ତୁଜନ୍ତା ସବୁ ନାଚିଲେ, ଡେଇଁଲେ । ମୟୂର ସବୁଠୁଁ ଭଲ ନାଚିଲା । ରାତିରେ ଜୁଳୁଜୁଳିଆ ଦୀପ ଖଞ୍ଜିଦେଲେ ।

ଝିଅର ଯୋଉ ଦିନ ନାଁ ଦିଆ ହେବ, ସେଦିନ ପାହାଡ଼ ରଜା ନାହାକ ଡାକିଲେ । ନାହାକ ଆସି ଜାତକ ତିଆରି କଲା । ନାଁ ଦେଲା ନଈ । କହିଲା—

ରଜା ମଣିମା, ଝିଅଟିଏ ସିନା ପାଇଲ, ହେଲେ ଇଏ ତମର ହୋଇ ରହିବ ନାଇଁ ।

ରଜା କହିଲେ—ଝିଅ ଯେତେବେଳେ ଦିନେ ନା ଦିନେ ତ ପାଖରୁ ଯିବ ।

ନାହାକ କହିଲା—ଏ ଦୁନିଆର ଢେର ଭଲ କରିବ, ତମ ନାଁ ରଖିବ ।

ରଜା କହିଲେ—ସେତିକି ଲୋଡ଼ା । ହଉ, ଆଉ କହ ।

ନାହାକ କହିଲା—ବହୁତ, ବହୁତ ।

ରାଣୀ କହିଲେ—ସେତିକି ଲୋଡ଼ା । ଆଉ କ'ଣ କହ ।

ନାହାକ କହିଲା—ସବୁ ହେଲା ଯେ, ଏକୁ ବନ୍ଧନ ଯୋଗ ଅଛି ।

ରାଜାରାଣୀ ଡରିଗଲେ । ପଚାରିଲେ—ଫେର୍ କ'ଣ ହବ ?

ନାହାକ କହିଲା—ସେ କିଛି ନୁହଁ । ଲେଖୁଚି ତ ଏକୁ ତିନି ଭୁବନରେ କେହି ବାନ୍ଧି ପାରିବେ ନାଇଁ । ଫେର୍ ଲେଖୁଚି ଏକୁ କିଏ ହେଲେ ବାନ୍ଧିବ । ହଁ, କ'ଣ ଗୋଟାଏ ରିଷ୍ଟ ଅଛି, କଟିଯିବ ।

ନାହାକ ଗଲା । ରଜା ରାଣୀ ଝିଅଟିକି ପାଳୁଥାଆନ୍ତି । ତାକୁ କୁଆଡ଼େ ହେଲେ ବାହାରକୁ ଛାଡ଼ନ୍ତି ନାଇଁ । ଏମିତି ହଉ ହଉ ଝିଅଟି ବଡ଼ ହେଲା । ତା'ର ଜ୍ଞାନ ହେଲା । ଦିନେ କହିଲା—ମୁଁ ଏଠି ରହିବି ନାଇଁ, ମୁଁ ଯିବି ।

ବାପ ମା ଯେତେ ବୁଝେଇଲେ ଆଉ ନ ମାନେ । ଏକା ଜିଦ୍ ଯେ, ସେ ଯିବ । ରଜା ରାଣୀ ସୂର୍ଯ୍ୟଙ୍କୁ କହିଲେ ।

ସୂର୍ଯ୍ୟ କହିଲେ—ସେ ତ ଆସିଚି ସମସ୍ତଙ୍କର ଭଲ କରିବ ବୋଲି । ତମେ ତାକୁ କୋଳରେ ରଖିଲେ କୁଆଡ଼ୁ ହବ ? ତାକୁ ଛାଡ଼, ସେ ଯାଉ । ତେବେ ଏତିକି କଥା ଯେ, ମୁଁ ତାକୁ ଏଠିକି ଆଣି ଦଉଥିବି । ସେ ଯୋଉଦିନ ତମ ଘରକୁ ଆସିଥିଲା, ସେଇ ଦିନ ସେଇବାଟେ ଆସୁଥିବ, ଫେର୍ ଯାଉଥିବ । ନଈ ବି ସେଥିରେ ହଁ କଲା । ତା ଘର ଭିତରୁ ପାଦ କାଢ଼ିଲା ।

ବାପ ମା ପଚ୍ଚରିଲେ—କୁଆଡ଼େ ଯିବୁ ? ଏକୁଟିଆଟା ଡରିବୁ ନାହିଁ ତ ?
ନଈ ହସ ହସ ଡେଇଁ ଡେଇଁ ଚାଲିଲା ।

ଯାଉ ଯାଉ ଦେଖିଲା ଯେ, ଗୁଡ଼ାଏ ଅଳସୁଆ ପଥର ଖରାକୁ ପିଠି ଦେଖାଇ ବାଟରେ ବସିଛନ୍ତି । ନଈ କେମିତି ଯିବ ?

କହିଲା— ପଥର ପଥର କଳା କଳା
ବାଟ ଛାଡ଼ିଦିଅ ମତେ ଭଲା ।

ପଥରଗୁଡ଼ାକ ଶୁଣିଲେ ନାହିଁ । ତାଙ୍କର ଖରା ଭଲ କି ସେମାନେ ଭଲ ।

ନଈ କହିଲା—ଆଚ୍ଛା, ନ ଉଠ—ଆଖି ନାହିଁ ମୋ କାନ ନାହିଁ
ମାଡ଼ି ଚାଲିଯିବି ଦୋଷ ନାହିଁ ।

ଗୋଟାଏ ପଥର ପଚାରିଲା—ତୁ କିଏ ?

ନଈ କହିଲା—ମୁଁ ନଈ ।

ପଥର ସବୁ କହିଲେ—ଆରେ, ତୁ ପରା ପାହାଡ଼ ରଜା ଝିଅ । ତୁ ଇଆଡ଼େ କୁଆଡ଼େ ଯାଉଚୁ ?

ନଈ କହିଲା—ମୁଁ ଯାଉଚି ମୋ ଘରକୁ ।



ପଥର ଗୋଟାଏ କହିଲା—ଯା ଘର ଫେର୍ ଇଆଡ଼େ ! କହି ଖୁବ୍ ଜୋରରେ ହସିଲା । ହସୁ ହସୁ ଗଡ଼ି ପଡ଼ିଲା ନଈ ଉପରେ । ନଈ ରାଗରେ ତା

ଦେହରେ ପଙ୍କ ମେଞ୍ଚାଟା ବୋଳି ଦେଲା । ସେ ଗଡ଼ି ଗଡ଼ି କେତେ ବାଟ ଗଡ଼ି ଥାଆନ୍ତା କେଜାଣି, ତାକୁ ଆଉ ଗୋଟାଏ ପଥର ଅଟକେଇ ଦେଲା ।

ନଈ କହିଲା—ମୁଁ ବାଟ କାହିଁକି ଭୁଲିବି ?

ମୁଁ ଯାଉଛି ସମୁଦ୍ର

ଜାଣ ଏଠୁ କେତେ ଦୂର ?

ପଥର ସବୁ କିଛି କହିଲେ ନାହିଁ । ଚୁପ୍ ଚାପ୍ ପଡ଼ି ରହିଲେ ।

ଦେଖୁ ଦେଖୁ ନଈ ସେମାନଙ୍କ ଉପରେ ଉଠି ତଳକୁ ଡେଇଁ ପଡ଼ି ଆଗେଇ ଚାଲିଲା । ଯାଉ ଯାଉ ଦେଖିଲା ଯେ, ଗୋଟାଏ ଗାତ ଅସୁରୁଣୀ ଆଁ କରି ଶୋଇଛି । ପାଣି ଟୋପାଏ ହେଲେ ତାକୁ କୋଉ କାଳୁ ମିଳି ନାହିଁ । ନଈକୁ ଦେଖି ସେ ଡାକିଲା—ଆଲୋ, ତୁ କିଏ ? ତୁ ତ କେଡ଼େ ସୁନ୍ଦର ହେଇଚୁ ।

ଆଇଲୁ ଆଇଲୁ ଟିକିଏ ମୋ ପାଖକୁ ।

ନଈ ତା କଅଁଳ ଡାକରେ ଭୁଲିଗଲା । କହିଲା—ମୁଁ ନଈ ।

ଗାତ-ଅସୁରୁଣୀ କହିଲା—ଆଲୋ ତତେ ମୁଁ ଜାଣିଚି । ତୁ ପର୍ବ ପାହାଡ଼ ରଜା ଝିଅ ? ଦେଖି ଦେଖି ଟିକିଏ ପାଖକୁ ଅଇଲୁ ।

ନଈ ଯିବାକୁ ଲାଜ ଲାଜ କରୁଥିଲା । ଅସୁରୁଣୀ କହିଲା—ଆଲୋ, ତୋରି ଭଳିଆ କେତେ ଝିଅ ଏବାଟେ ଗଲେଣି । ତୁ ସବୁଠୁ ସୁନ୍ଦର । ଯିଏ ଏବାଟେ ଆସେ ଏ ବୁଢ଼ୀଟାକୁ ଟିକିଏ ପଚାରେ । ତୁ ଟିକିଏ ଆ । ନଈକୁ ବୁଢ଼ୀ କଥା ଭାରି ଭଲ ଲାଗିଲା । ସେ ବୁଢ଼ୀ ପାଖକୁ ଗଲା । ଯେମିତି ଯାଇଚି ବୁଢ଼ୀ ତାକୁ ଗିଳି ଲାଗିଲା । ଗିଳୁଥାଏ ଗିଳୁଥାଏ, ନଈ ତା ଭିତରକୁ ପଶି ପଶି ଯାଉଥାଏ, କାନ୍ଦୁଥାଏ ; ଖୁବ୍ ପାଟିକରି କାନ୍ଦୁଥାଏ । ତାକୁ ଖାଲି ଅନ୍ଧାର ଦିଶୁଥାଏ । କେତେ ବାଟ ପଶିଚି ତା



ନାକରେ ଗୋଟାଏ ଗନ୍ଧ ବାଜିଲା । ନଈ ବୁଝି ପାରିଲା ଯେ, ଇଏ ଗାତ-ଅସୁରୁଣୀ କେତେ ନଈ ଗିଳିଛି । ତା ପେଟରେ ସବୁ ସଢ଼ିଯାଇଚନ୍ତି । ସେଇଠୁ ଗନ୍ଧ ଆସୁଛି । ନଈ କ'ଣ କରିବ ! ତାକୁ ବୁଦ୍ଧ ବୁଦ୍ଧି ଲାଗିଲାଣି । ସେ ତ ଓଲଟି କରି ଯାଇ ପାରିବ ନାହିଁ । ବଗୁରିଲା ବୁଢ଼ୀର ପେଟ ଫୁଟେଇ ଦବ । ଲଗେଇଲା ବଳ ।

ବୁଢ଼ୀ ସିନା ଭାବିଥିଲା ଏକୁ ଗିଳି ହଜମ କରିଦବ । ସେ କ'ଣ ଜାଣିଛି ପାହାଡ଼ ରଜା-ଝିଅର ବଳ ଏତେ ? ନଈ ତା ପାଟି ଚିରି ପକାଇଲା । ବୁଢ଼ୀର ପେଟ ଫାଟି ଯିବାରୁ ନଈ ସେଇବାଟେ ବାହାରି ପଡ଼ିଲା । ଗାତ-ଅସୁରୁଣୀ ସେଇଠି ମରି ପଡ଼ିଲା ।

ନଈ ଏଥର ଆଗେଇଲା । ତା'ର ସାହସ ବଢ଼ିଗଲା । ସେ ସମସ୍ତଙ୍କୁ ମାଡ଼ି ମକଚି ଚାଲିଥାଏ । ଯେଉଁଠି ପାହାଡ଼ ଦେଖେ ସେଇଠି ପାହାଡ଼କୁ ମୁଣ୍ଡିଆ ମାରେ, ପାହାଡ଼ର ପାଦ ଧୋଇ ଧୋଇ ଆଗେଇ ଯାଏ । ଯାଉ ଯାଉ ଠାକରେ ଦେଖିଲା ଯେ, ଗୋଟାଏ ବଡ଼ ଅଡ଼ଡ଼ି । କେମିତି ଓହ୍ଲେଇବ ? ଭାବୁ ଭାବୁ ସେ ଡେଇଁ ପଡ଼ିଲା । ଏଡ଼େ ପାଟି କରି ଡେଇଁଲା ଯେ, ଆଖ ପାଖ ପାହାଡ଼ରେ ତା ଶବ୍ଦ ବାଜିଲା ।

ନଈ ଆଗେଇ ଚାଲୁଥାଏ । ଯାଉ ଯାଉ ଦେଖିଲା ଯେ, ସେ ବହୁତ ବାଟ ଆସି ସାରିଲାଣି । ଏଣିକି ତାକୁ ବେଶି କଷ୍ଟ ହଉନାହିଁ । ଗୀତ ଗାଇ ଗାଇ ସେ ଧୀରେ ଧୀରେ ଚାଲିଥାଏ । ଏତିକିବେଳେ ଗୋଟିଏ ଚଢ଼େଇ ଆଇଲା ।

ପଚାରିଲା—ତୁ କିଏ ?

ନଈ କହିଲା—ମୁଁ ନଈ ।



ଚଢ଼େଇ କହିଲା—ହଁ ହଁ ତୋ ନା ମୁଁ ଶୁଣିଛି ।

ତୁ ପରା ପାହାଡ଼ ରଜା ଝିଅ ?

ଇଆଡ଼େ କୁଆଡ଼େ ଯାଉଚୁ ?

ନଈ କହିଲା— ମୋ ଘରକୁ ।

ଚଢ଼େଇ କହିଲା—ତୁ ତ ବାଟ ଭୁଲିଗଲୁ ।

ନଈ କହିଲା—ନାଇଁ । ମୋ ଘର ସମୁଦର ।

ଜାଣୁ ଏଠୁ କେତେ ଦୂର ?

ଚଢ଼େଇ ଟିକିଏ ତା ଲାଞ୍ଜକୁ ହଲେଇ ଦେଲା, କହିଲା—

ଟିଣଟିଣା ।

ଛୋଟ ଚଢେଇ ମୁଁ ଛୋଟିଆ ଡେଣା

ଯାଏ ନା ଦୂରକୁ ହୋଇବ ବଣା ।

ଖାଇ ପିଇ ମୋଅ ଦୁଃଖେ ମୁଁ ଥାଏ

କିଏ ସମୁଦର ଆଉ ମୁଁ କିଏ ?

ନଈ କହିଲା—ହଉ, ଏଥର ତୁ ଆସିବୁ । ଏଇଠି ଆସି ପାଣି ପିଇବୁ, ଗାଧୋଇବୁ । ଚଢ଼େଇ ନଈ ପାଣିରେ ଟିକିଏ ଗାଧୋଇ ପଡ଼ିଲା । ଆଉ ଗୀତ ଗାଇ ଗାଇ ଗୁଳିଲା—



ଟିଣଟିଣା ।

ସବୁ କଥା ଏବେ ମୋତେ ଜଣା,

ଟିଣଟିଣା, ଟିଣଟିଣା ।

ଏଥର ଆସିଲା ଗୋଟିଏ ହରିଣ ।

ପଚାରିଲା—ତୁ କିଏ ?

ନଈ କହିଲା—ମୁଁ ନଈ ।

ହରିଣ କହିଲା—ତୁ ପରା ପାହାଡ଼ ରଜା ଝିଅ ? ତୁ ଇଆଡ଼େ କୁଆଡ଼େ ?

ନଈ କହିଲା—ମୋ ଘରକୁ ।

ହରିଣ କହିଲା—ତୁ ବାଟ ଭୁଲିଗଲୁ ।
ନଈ କହିଲା—ନାହିଁ । ମୋ ଘର ସମୁଦ୍ରର
ଜାଣୁ ଏଠୁ କେତେ ଦୂର ?
ହରିଣ କହିଲା— ଚରି ବୁଲୁଥାଏ ଘାସ ପଡର,

ପାଣି ପିଇବାକୁ ଖୋଜଇ ଝର,
ଖାଇ ପିଇ ମୋଅ ଦୁଃଖେ ମୁଁ ଥାଏ,
କାଏ ସମୁଦ୍ରର ଆଉ ମୁଁ କାଏ ?
ନଈ କହିଲା—ହଉ ତୁ ଏଥର ଏଠିକି ଆସିବୁ ପାଣି ପିଇଦେଇ ଯିବୁ ।
ହରିଣ କହିଲା—ହଉ- ହୁକ୍ ହୁକ୍ ହଉ
ଠିକ୍ ତୁ ଯାହା କହୁ
ହୁକ୍ ହୁକ୍ ହଉ ।
କହି କହି ସେ ଚାଲିଗଲା ।
ଏମିତି ଗୋଟି ଗୋଟି ହୋଇ ସବୁ ଜନ୍ତୁ ତା ପାଖକୁ ଆସିଲେ ।
ଆଇଲା ଠେକୁଆ ଠିଆ କାନଆ
ଆଇଲା ବାର୍‌ହା ଦାନ୍ତ ମୁନଆ ।
ଆଇଲା ହାତୀ କାନ ହଲାଇ
ଆଇଲା ବାଘ ଛାତି ଫୁଲେଇ ।
ମୁହଁ ପୋତି ପୋତି ଆଇଲା ଭାଲୁ
ଅନ୍ତଲ ପେଟ ତା ଥାଲୁ ଥାଲୁ ।
ଆଇଲା ନେଉଳ ଗୋଜଆ ମୁହାଁ
ଆଇଲା ମୂଷା ମାରି ଡିଆଁ ।



ପେଟରେ ଘୁଷୁରୁ ଆଇଲା ସାପ
ମାରେ ଡିଆଁ ବେଙ୍ଗ ଖପ ଖାପ ।

ଆଇଲା ବିଲୁଆ
ଧାଇଁଲା କୋକି
ସମସ୍ତେ କହିଲେ
ଦେଖି ଦେଖି ।

ଦେଖିଲେ ଯେ, ନଈ ଗୀତ ଗାଇ ଗାଇ ଗ୍ଲୁଚ । ସମସ୍ତଙ୍କୁ ସେ ଡାକିଲା, କହିଲା—ଆସିବ, ଏଇଠୁ ପାଣି ପିଇ ଦେଇ ଯିବ ।

ସମସ୍ତେ ପାଣି ପିଇଲେ, କହିଲେ—ପାହାଡ଼ ରଜା ଝିଅ ଲୋ

କାଳ କାଳ ଧର ଜିଅ ଲୋ ।

ଏମିତ ହଉ ହଉ ଦିନେ ମଣିଷ ତା ପାଖକୁ ଆସିଲା । ନଈକୁ କିଛି ପଗ୍ଲୁରିବ ପଗ୍ଲୁରିବ ହେଲା । ପଗ୍ଲୁରିଲା ନାହିଁ । ଖାଲି ଦେଖିଲା, ପାଣି ପିଇଲା, ଗ୍ଲୁଲିଗଲା । ଏମିତ କେତେ ଆସେ, କେତେ ପାଣି ପିଏ, ଯାଏ ।

ଦିନେ ପଗ୍ଲୁରିଲା—ତୁ କିଏ ? କୁଆଡୁ ଆଇଲୁ, କୁଆଡ଼େ ଯାଉଚୁ ?

ନଈ କହିଲା—ମୁଁ ନଈ । ମୁଁ ପାହାଡ଼ ରଜା ଝିଅ । ମୁଁ ଯାଉଚି ମୋ ଘରକୁ ।

ମଣିଷ କହିଲା—ତୁ ତେବେ ବାଟ ଭୁଲିଗଲୁ ।



ନଈ କହିଲା—ନାଇଁ, ଘର ମୋର ସମୁଦର

ଜାଣୁ ଏଠୁ କେତେ ଦୂର ?

ମଣିଷ କହିଲା—କାହିଁ ସମୁଦର କାହିଁ ମୁଁ !

ସିଆଡ଼ିକି ଯାଇ ନାହିଁ ମୁଁ ।

ନଈ କହିଲା—ଆ, ମୁଁ ତତେ ସମୁଦର ବୁଲେଇ ଆଣିବ ।

ମଣିଷ କିଛି କହିଲା ନାଇଁ । କିଛି ଦିନ ଗଲା । ଦିନେ ନଈ ଫେର୍ ଡାକିଲା—

ଆ'ରେ ମଣିଷ ସାଥିରେ ମୋର

ବୁଲାଇ ଆଣିବ ସମୁଦର ।

ମଣିଷ କହିଲା—ନାଇଁ ମୁଁ ପାରିବ ନାଇଁ ।

ମଣିଷ ନଈ ଯାଏ, ନଈ ପାଖରେ ବସେ । ଭାବେ, କେମିତି ନଈ ଭିତରକୁ ଯିବ ! ନଈର ଆରପଟେ ତା କାମ, ସେ କେମିତି କରିବ ? ନଈ ସମୁଦ୍ର ଆଡ଼କୁ ଫେଁର୍ ଡାକୁଚି । ଏମିତି ଭାବୁ ଭାବୁ ଦେଖିଲା ଗୋଟିଏ ମାଛ ପହଁରି ପହଁରି ସେ ବାଟେ ଗଲା । ମାଛ ଗୁଲିଗଲା । ଆଇଲା ଗୋଟିଏ



ହଂସ । ପହଁରି ପହଁରି ସେ ବି ଗଲା । ମଣିଷ ଆଉ ସମ୍ଭାଳି ପାରିଲା ନାହିଁ । ପାଣି ଭିତରେ ପଶିଗଲା । ହାତ ହଲେଇଲା, ଯେମିତି ମାଛ ତା ଡେଣା ହଲାଏ ; ଗୋଡ଼ ହଲେଇଲା, ଯେମିତି ହଂସ ହଲାଏ ।



ଏମିତି ମଣିଷ ନଡି ଗଲା । ନଡି ପାଣିରେ ପଶି ହାତ ଗୋଡ଼ ହଲାଇଲା ।

ନଈ କହିଲା—ବାଃରେ ମଣିଷ । ଆଉ ଭିତରକୁ ଆ, ଆଉ ଭିତରକୁ ଆ ।

ମଣିଷ ନଈ କଥାରେ ଭିତରକୁ ଗଲା । ଦେଖୁ ଦେଖୁ ନଈ ତାକୁ ଟାଣି ନେଇଗଲା । ମଣିଷର ହାତ ଗୋଡ଼ ପାଇଲା ନାହିଁ । ସେ ବୁଡ୍ ବୁଡ୍ ହେଲା । ପାଟି କଲା—ନଈ ଲୋ, ମୁଁ ବୁଡ଼ିଗଲି, ବୁଡ଼ିଗଲି ।

ନଈ ଚକା ଚକା ଭଉଁରୀ ଖେଳି ଖେଳି ଗୁଲିଲା । କହିଲା—

ଆଖି ନାହିଁ ମୋ କାନ ନାହିଁ
ବୁଡ଼ିଗଲେ ମୋର ଦୋଷ ନାହିଁ ।

ମଣିଷ ନଈ ଉପରେ ରାଗିଗଲା । ରାଗିଲେ କ'ଣ ହେବ, ହାତ ଗୋଡ଼ ହଲେଇ ଭାସିବାକୁ ଆଉ ବଳ ନାହିଁ । ବୁଡ଼ୁଚି, ଏତିକିବେଳେ ଖଣ୍ଡେ କାଠ ଭାସି ଯାଉଥିଲା । ମଣିଷ ତାକୁଇ ଧରିପକେଇଲା । ତାକୁ ଧରି ହାତ ହଲେଇ ହଲେଇ କୂଳରେ ଲାଗିଲା । ସେ କାଠକୁ ଆଉ ସେ ଛାଡ଼ିଲାନାହିଁ । ଜୀବନ ରଖିଚି ବୋଲି ତାକୁ ପୂଜା କଲା । ଏଥର ତାକୁଇ ଧରି ସେ ପାଣି ଭିତରକୁ ଯାଏ, ନଈ ପାରି ହୁଏ ।

ନଈ ଏଥର ଡାକିଲା—ଆ ମଣିଷ, ତୋତେ ସମୁଦ୍ର ଆଡ଼େ ନେଇଯିବ ।

ମଣିଷ କହିଲା----ନାଇଁ ଲୋ,

ତୋ କଥା ମୁଁ କରିବ ନାଇଁ
କାଠ ଖଣ୍ଡେ ଧରି ମରିବ ନାଇଁ ।

ନଈ ହସି ହସି ଚାଲିଗଲା ।

ମଣିଷ ଫେର୍ ଯାଇ ନଈ ପାଖରେ ବସେ । ମାଛକୁ ଦେଖେ, ହଂସକୁ ଦେଖେ । ଦିନେ ହଂସକୁ ପଚାରିଲା---ହଂସ, ତୁ କେମନ୍ତ ଆଗକୁ ଚାଲୁଚୁ ? ମାଛ କେମିତି ଯାଉଚ ?

ହଂସ କହିଲା---- କଅଡ଼ କଡ଼,
ଏଇ କଥାଟା କୋଉ ବଡ଼ ?

ହଂସ ଏତିକି କହି ପାଣି କାଟି ଚାଲିଗଲା । ମଣିଷ ଦିନେ ଖଣ୍ଡେ କାଠକୁ ମାଛ ଡେଣା ଯେମିତି, ସେମି ପାତଳା କଲା । କାଠ ଉପରେ ବସି ତହିଁରେ ପାଣିକି ଆଡ଼େଇଲା । କାଠ ଆଗକୁ ଚାଲିଲା । ହେଲେ କାଠଟାକୁ ସେ ମୋଡ଼ି ପାରୁ ନାହିଁ । ଫେର୍ ହଂସକୁ ପଚାରିଲା---ହଂସ, ତୁ କହିଲୁ, ମାଛ କେମିତି ଯୁଆଡ଼େ ମନ ସିଆଡ଼େ ମୋଡ଼ି ହେଇ ଯାଉଚ ?

ହଂସ କହିଲା---- କଅଡ଼ କଡ଼
ଏଇ କଥାଟା କୋଉ ବଡ଼ ?
ଦେଖ ମାଛ
ପଛରେ ପୁଚ୍ଛ ।

ମଣିଷ ମାଛକୁ ଅନାଇଲା, ଅନାଇଲା, ତା କାଠ ପଛରେ ଖଣ୍ଡେ କାଠକୁ ପତଳା କରି ମାଛ ଲାଞ୍ଜ ପରି ଲଗାଇଲା । ଏଥର ତାକୁ ମୋଡ଼ିଲା । ଦେଖିଲା, ତାକୁ ଡାହାଣକୁ ମୋଡ଼ିଲେ ତା କାଠ ବାଁକୁ ମୁହଁ କରୁଚି, ବାଁକୁ ମୋଡ଼ିଲେ ତା କାଠ ଡାହାଣକୁ ମୋଡୁଚି ।

ଫେର୍ ଦିନେ ନଈ ଡାକିଲା—

ଆ'ରେ ମଣିଷ ସାଥିରେ ମୋର
ବୁଲାଇ ଆଣିବ ସମୁଦର ।

ମଣିଷ କହିଲା—ନାଇଁ ଲୋ ନାଇଁ,

ତୋଅ କଥା ମୁଁ କରିବ ନାଇଁ
କାଠ ଖଣ୍ଡେ ଧରି ମରିବ ନାଇଁ ।

ଏଇ କଥା କହି ସେ ପାଣିରେ କାଠ ଧରି ବୁଲୁଚି ଦେଖିଲା, ଫାଲେ ଶୁଖିଲା ଫଳର ଖୋଳପା ଭାସି ଭାସି ଯାଉଚି । ମଣିଷ ତାକୁ ଧରିଲା, ପରଖିଲା, ସେଠଉ ତା କାଠକୁ ଖୋଲି ଖୋଳପା ପରି କଲା । ଆଗ ପରି ଦୁଇ ପାଖରେ ପତଳା କାଠ ଲଗାଇଲା, ଯେମିତି ମାଛର ଡେଣା, ପଛରେ ଖଣ୍ଡେ ପତଳା କାଠ ଲଗାଇଲା, ଯେମିତି ମାଛର ଲାଞ୍ଜ ।

କାଠ ତାର ଭଲ ଚାଲିଲା । ଚଞ୍ଚଳ ଚାଲିଲା । ଆଉ କେମିତି ଚଞ୍ଚଳ ଚାଲନ୍ତା ! ଭାବୁଚି ଭାବୁଚି, ଆସି ପହଞ୍ଚିଲା ହଂସ ।

ମଣିଷ ପଚାରିଲା—ହଂସରେ, କହିଲୁ ମୋ କାଠ କେମିତି ଚଞ୍ଚଳ ଯିବ ?

ହଂସ କହିଲା—କଅଡ଼ କଡ଼,

ଏଇ କଥାଟା କୋଉ ବଡ ?
ମାଛ ଖୋଜ
ମୁହଁ ଗୋଜ ।

ମଣିଷ ଦେଖିଲା, ସତେ ତ ମାଛର ମୁହଁ ଆଡ଼ଟା ଗୋଜିଆ । ସେଠଉ ସେ ତା କାଠର ଆଗ, ପଛ ଦି ପଟକୁ ଗୋଜିଆ କଲା । ଏଥର କାଠ ତାର ଆଉରି ଚଞ୍ଚଳ ଚାଲିଲା ।



ଏତିକି ବେଳେ ନଈ ଡାକିଲା—

ଆ'ରେ ମଣିଷ, ସାଥିରେ ମୋର,
ବୁଲେଇ ଆଣିବି ସମୁଦର ।

ମଣିଷ କିଛି କହିଲା ନାହିଁ । ସେ ଭାବୁଥାଏ ତା କାଠ କେମିତି ଆଉରି ଚଞ୍ଚଳ ଚାଲିବ । ଫେର୍ ଭାବିଲା, ନଈ ସମୁଦର ଆଡ଼ିକି ତା କାଠକୁ ଚଞ୍ଚଳ ଟାଣି ନଉଚି, ଘରକୁ ଫେରିଲା ବେଳକୁ ଅଟକାଉଚି । ପାଣି କାଟିବାକୁ କଷ୍ଟ ହଉଚି । ହାତ ଫାଟି ପଡ଼ୁଚି ।

ଦିନେ ଖରା ହେଇଥାଏ । ମଣିଷ ତା କାଠରେ ବସି ନଈରେ ବୁଲୁଥାଏ । ଖରା କାଟୁଚି ବୋଲି ମୁଣ୍ଡରେ ଛତା ଟେକିଥାଏ । ଯାଉଥାଏ ନଈ ତଳ ଆଡ଼କୁ । ତା କାଠ ସାଇଁ ସାଇଁ ଚାଲିଥାଏ । ମଣିଷକୁ ଆଉ ଫେଣା କାଠରେ ପାଣି କାଟିବାକୁ ହଉ ନ ଥାଏ । ଏତିକିବେଳେ ଝିଲ୍‌କାଏ ପବନ ତା ଛତା ଭିତରେ ପଶି ଠେଲିଲା । ସେ ନଈ ତଳକୁ କ'ଣ ଯିବ, ତା କାଠ ନଈ ଉପର ଆଡ଼କୁ ଚାଲିଲା ।



ମଣିଷ ତା ଛତାକୁ ସମ୍ଭାଳୁ ଥାଏ ଯେତିକି ପବନ ଠେଲୁଥାଏ ସେତିକି । ଡଙ୍ଗା ଉଜାଣିରେ ସର ସର ହୋଇ ଚାଲିଥାଏ ।

ମଣିଷ ମୁଣ୍ଡରେ ବୁଦ୍ଧି ପଶିଗଲା । ସେ କହିଲା---

ବାଃରେ ପବନ ଭଲ କଲୁ,
ହଜିଲା ବୁଦ୍ଧି ଖୋଜି ଦେଲୁ ।

ଏଥର ସେ ନଈ ସାଙ୍ଗରେ ତଳକୁ ତଳକୁ ଯାଏ, ଫେରିଲା ବେଳେ ଛତାକୁ ଟେକି ଡାକେ---ନେ ପବନ ଛତା ଟାଣି,

ମୋ କାଠ କାଟୁ ଉଜାଣି ପାଣି ।

ପବନ ଆସେ, ଛତାକୁ ଠେଲେ, ମଣିଷ ନଈ ଉପର୍ ଆଡ଼ିକି ଆସେ । ପବନ ନ ଆସିଲେ ମଣିଷ ଡେଣା କାଠରେ ପାଣି କାଟି କାଟି ଆସେ, ହାଲିଆ ହେଇ ପଡ଼େ ।

ଦିନେ ଫେର୍ ନଈ ଡାକିଲା---ଆ'ରେ ମଣିଷ ସାଙ୍ଗରେ ମୋର୍,
ବୁଲାଇ ଆଣିବି ସମୁଦ୍ଦର୍ ।

ମଣିଷ କିଛି କହିଲା ନାହିଁ । ସେ ଜଙ୍ଗଲରୁ ବଡ଼ ବଡ଼ ଶୁଖିଲା କାଠ ଆଣିଲା । ତାକୁ କାଟି, ଯୋଡ଼ି ଗୋଟାଏ ଖୋଳପା ଭଳିଆ, ଖୁବ୍ ବଡ଼ କଲା ।



ବହୁତ ବଡ଼ । ତା ଦି'ପଟେ ଡେଣା-କାଠ ଲଗାଇଲା, ତା ନାଁ ଦେଲା ଆହୁଲା । ପଛରେ ଲମ୍ବକାଠ ଦେଲା ; ତା ନାଁ ଦେଲା ମଙ୍ଗ । ମଝିରେ ଗୋଟିଏ କାଠ ପୋତିଲା ତା ଦେହରେ ବଡ଼ ତାଟି ବାନ୍ଧିଲା । ପବନକୁ ଡାକିଲେ ସେ ତାଟିକି ଉଠାଏ, ନ ହେଲେ ତାଟିକି ପକେଇ ଥାଏ । ଏଥର ସେଇ ଖୋଳପା ଉପରେ ଗୋଟାଏ ଛୋଟିଆ ଘର୍ କଲା । ଖରା ହେଲେ ଛାଇ ପାଇବ, ବରଷା ହେଲେ ସେ ଓଦା ହବ ନାହିଁ । ଏ ଖୋଳପାର୍ ନାଁ ଦେଲା ନାଆ ।

ଏଥର୍ ନଈ ଡାକିଲା---ଆ'ରେ ମଣିଷ ସାଙ୍ଗରେ ମୋର୍
ବୁଲାଇ ଆଣିବି ସମୁଦ୍ଦର୍ ।

ମଣିଷ ଏଥର୍ ଗଲା । ନଈ ତାକୁ ଭାରି ଖୁସିରେ ସାଙ୍ଗରେ ନେଇଗଲା । ଯାଉଚି ଯାଉଚି, ବହୁତ ବାଟ ଗଲା ପରେ ତାକୁ ଗର୍ଜନ ଶୁଭିଲା । ମଣିଷ ଡରି-ଗଲା । ନଈ ତାକୁ ଟାଣିନେଇ ଯାଉଚି । ମଣିଷ ଦେଖିଲା ଆଗରେ ସମୁଦ୍ର । ଖାଲି ପାଣି ଆଉ ପାଣି । ନେଳୀ ନେଳୀ ଦିଶୁଚି । ତା ଉପରେ ପାହାଡ଼ ପରି

ଏତେ଼ ଏତେ଼ ଲହଡ଼ି ଉଠୁଚି । ମଣିଷ ଭାବିଲା, ନଈ ମୋତେ ମାରିବ ବୋଲି ଡାକି ଆଣିଚି । କହିଲା---ନଈ ଲୋ ! ମୁଁ ତୋର କଅଣ କଲି,

ଭୁଲେଇ ଆଣିଲୁ ମାରିବୁ ବୋଲି ?

ନଈ ହସିଲା । ମଣିଷକୁ ତା ହସ ଭଲ ଲାଗିଲା ନାହିଁ ; ଡର ମାଡ଼ିଲା । ସେ ଭାବିଲା---ନାଇଁ, ଘରକୁ ଫେରିଲେ ବଞ୍ଚିବି । ଏତେ ଏତେ ପାହାଡ଼ ଭଳି ଲହଡ଼ି ! ମୋ ନାଆ ତ ବୁଡ଼ିଯିବ । ସେଠଉ ସେ ପାଲ ଟାଙ୍ଗିଦେଲା । ପବନକୁ ଡାକି କହିଲା---ନେ' ପବନ ପାଲ ଟାଣି,

ନାଆ ମୋ କାଟୁ ଉଜାଣି ପାଣି ।



ପବନ ଆସିଲା । ପାଲକୁ ଠେଲି ଠେଲି ମଣିଷକୁ ତା ଘରଠି ଛାଡ଼ିଦେଲା । ଏଥର ମଣିଷ ଆସି ଗୋଟାଏ ବଡ଼ ନାଆ ତିଆରି କଲା । ଖୁବ୍ ବଡ଼ । ଗୋଟାଏ ନୁହଁ ବହୁତ ପାଲ ଟାଣିଲା, ମୋଟା କନାର ପାଲ । ନାଆ ଦେହରେ ବହୁତ ଆହୁଲା ଲଗାଇଲା । ତା ନାଁ ଦେଲା ବୋଇତ ।

ନଈ ଫେର ଡାକିଲା—
ଆ'ରେ ମଣିଷ ସାଙ୍ଗରେ ମୋର,
ବୁଲାଇ ଆଣିବ ସମୁଦର ।

ମଣିଷର ଏଥର ସାହସ ହୋଇଗଲା । ସେ ଗ୍ଭଲିଲା ନଈ ସାଙ୍ଗରେ । ଯାଉ ଯାଉ ଆସିଲା ସମୁଦ୍ର । ମଣିଷ ସାହସ ବାନ୍ଧି ଭିତରକୁ ଭିତରକୁ ଗଲା । ଏମିତି ଗଲା ଆଇଲା, ଗଲା ଆଇଲା ସମୁଦ୍ରକୁ ଚିହ୍ନିଲା ।

ମୁହଁ ଦେଖି ତାର ମାଡ଼େ ଡର
ହେଲେ କ'ଣ ହବ ? ଭିତରେ ଥିର
ରାଗିଲେ କରଇ ହରବର ।
ଧମାରେ ଧମା
ହେଲେ କ'ଣ ହେବ ? ପିଇବାକୁ ଟୋପେ ଦିଏ ନ ପାଣି
ସବୁ ଲୁଣି ।
କେତେ ଯେ ଧନ,
ହେଲେ କ'ଣ ହବ ? ଜଗୁଆଳୀ ସେଠି ପଣ ପଣ,
ହାବୁଡ଼େ ପଡ଼ିଲେ ନେବେ ପ୍ରାଣ ।
ଡରେ ନା କା'କୁ
ହେଲେ କ'ଣ ହବ ? ସୂରୁଜ ଦେଖିଲେ ପାକୁ ପାକୁ
ଲୁଣ ଛାଣି ପାଣି ଦିଏ ତାକୁ ।

ଏଇ ସବୁ କଥାକୁ ବୁଝି ସୁଝି ମଣିଷ ତା ବୋଇତକୁ ଆଉରି ବଡ଼ କଲା । ତହିଁରେ ନଈ ପାଣି ସାଇତିଲା, ଖାଇବା ଜିନିଷ ରଖିଲା । କେଜାଣି ଯାଉ ଯାଉ କୁଆଡ଼େ ଯିବ, କେତେ ବାଟ ଯିବ, କିଏ କହିବ ? ସବୁ ଜିନିଷ ପାଖରେ ଥିଲେ ଭଲ ।

ସବୁ ଜନଷ ଠିକ୍ କରି ବସିଚି ତା ମନରେ ହେଲା, ଅଚ୍ଛା, ଏଇନା ଯଦି ଯିବ ନଈ ସିନା ଖାଲି ସମୁଦ୍ର ଯାଏଁ ନେଇଯିବ—ସେଠଉ ? ଆହୁଲା ମାରି ମାରି କେତେ ବାଟ ଯିବ ? ପବନ ତ ସମୁଦ୍ର ଆଡ଼ୁ ଆସୁଚି । ମୋ ପାଲକୁ ଟାଣିବ କିଏ ? ସେଠୁ ସେ ପବନକୁ ପଚାରିଲା—ପବନ, ତୁ ସମୁଦ୍ର ଆଡ଼େ ଯିବୁ ?

ପବନ ସାଇଁ ସାଇଁ ହୋଇ ଧାଇଁ ଚାଲିଥାଏ । କିଛି କହିଲା ନାହିଁ । ଜଣା ପଡ଼ିଲା ଯେମିତି ତାର ଶୁଣିବାକୁ ବେଳ ନାଇଁ ।

ମଣିଷ ଫେରି ତାକୁ ପଚାରିଲା—କିରେ ପବନ, କୁଆଡ଼େ ଧାଉଁଚୁ ?

ପବନ ଶୁଣିଲା । କହିଲା—ସାଇଁ ସାଇଁ

ଯୁଆଡ଼େ ତାଡ଼ୁଚି ଭୂଇଁ,
ସିଆଡ଼େ ଯାଉଚି ମୁହିଁ ।

ମଣିଷ ପଚାରିଲା—ତୁ ଧାଇଁ କ'ଣ କରିବୁ ?

ପବନ କହିଲା—ସାଙ୍ଗରେ ନଉଚି ପାଣି,
ଏ କଥା ପାରୁନୁ ଜାଣି ?

ମଣିଷ ପଚାରିଲା—ହଉ, ତୁ କେବେ ଫେରିବୁ ? ମୋତେ ସମୁଦ୍ରକୁ ନେଇ ଯାଆନ୍ତୁ ।

ପବନ କହିଲା—ସୂରୁଜ ଫେରିବା ବେଳେ,
ଫେରିବି ତାଙ୍କ ସାଙ୍ଗରେ ।

ମଣିଷ ଅନେଇ ଥାଏ । ମାସେ ଗଲା, ଦି ମାସ ଗଲା, ତିନି ମାସ ଗଲା, ପବନ ଭାରି କାମରେ ଲାଗିଥାଏ । ମେଘକୁ ସବୁ ଏପଟ ସେପଟ ନେବା ଆଣିବା କରୁଥାଏ । କେତେବେଳେ ସମୁଦ୍ର ଆଡକୁ ଦୌଡ଼ୁଥାଏ, କେତେବେଳେ ସମୁଦ୍ର ଆଡ଼ୁ ଦୌଡ଼ୁଥାଏ ।

ମଣିଷ ଫେର ଥରେ ପଚାରିଲା—ପବନ, କେବେ ?

ପବନ କହିଲା—ତୋତେ ପରା କହିଚି—ସୂରୁଜ ଫେରିବ ଯେବେ ।

ଆଉ କହିଲା—ସୂରୁଜ ଯାଇଚି ଉତ୍ତର,

କାହିଁକି ଏଇନା ତତ୍ପର ?

ଦେଖୁ ଦେଖୁ ଫେର୍ ତିନ ଚାରି ମାସ କଟିଗଲା । ସୂର୍ଯ୍ୟ ଦକ୍ଷିଣ ଆଡ଼କୁ ମୁହଁ ମୋଡ଼ିଲେ । ପବନ ତାଙ୍କ ପଛେ ପଛେ ଆଇଲା । ମଣିଷକୁ କହିଲା—

ସୂରୁଜ ଗଲାଣି ଦକ୍ଷିଣ ଆଡ଼େ

ଏତେବେଳେ ତୋଅ ବୋଇତ କାଢ଼େ,

ଉଠ ମଣିଷ, ମେଲା ପାଲ

ସମୁଦର ଆଡ଼େ ଯିବା ଚାଲ ।

ମଣିଷ ତା ବୋଇତରେ ପାଲ ଟାଣି ଦେଲା । ନଈ ବଳ, ପବନ ବଳ ଦୁହେଁ ମିଶି ତାକୁ ସମୁଦ୍ର ମୁହଁକୁ ନେଇଗଲେ । ତେଣିକି ପବନ ପାଳି । ମଣିଷ ଚାଲିଲା ସମୁଦ୍ର ଭିତରକୁ ଭିତରକୁ । ଆଉ ତା ଭୂଇଁ ଦଶିଲା ନାହିଁ । ଯାଉ ଯାଉ ଦେଖିଲା ଚାରିଆଡ଼େ ଖାଲି ପାଣି ଆଉ ପାଣି । ଅନେକ ଦିନ ଗଲା । ତା ପାଣି ସରି ସରି ଆସିଲା, ଖାଇବା ଜିନିଷ କମ ହୋଇ ଆସିଲା । କେହି ସାହା ନାହିଁ କି ଭରସା ନାହିଁ । ଏତିକିବେଳେ ଦେଖିଲା ଆକାଶରେ ଚଢ଼େଇ ଉଡ଼ୁଚନ୍ତି । ଦେଖୁ ଦେଖୁ ଗଛପତ୍ର ଦିଶିଲା । ସେ ପହଞ୍ଚିଲା ଗୋଟାଏ ନୂଆ ଭୂଇଁରେ । ସମୁଦ୍ର ଭିତରେ ଫେର ଭୂଇଁ ! କେଡ଼େ ଖୁସି ହେଲା । ସେଠେଇ କିଛିଦିନ ରହିଲା । ପବନକୁ ପଚାରୁଥାଏ ସେ କେବେ ଘର ଆଡ଼କୁ ଫେରିବ ।

ପବନ କହୁଥାଏ—ସୂର୍ଯ୍ୟ ତୋ ଘର ଆଡ଼କୁ ଗଲେ ।

ସେ ଫେରିଲା । ଏଥର ଭାବିଲା—ଏମିତି ପବନକୁ ଅନେଇ ରହିଲେ ଚଳିବ ନାହିଁ । ଭାବୁ ଭାବୁ ଦିନେ ସେ ତା ବୋଇତକୁ ବାମ୍ପ ବଳରେ ଚଳାଇବାକୁ

ଜାଣିଲା । ବୋଇତ ବହକୁ କାଠରେ ନ କରି ଲୁହାରେ କଲା । ବାମ୍ପ କଳ ଖଞ୍ଜିଲା । ଏଥର ମନଇଚ୍ଛା ସମୁଦ୍ରକୁ ଗଲା, ଆଇଲା । ସମୁଦ୍ର ସାଙ୍ଗରେ ତାର ଭଲ ପଡ଼ିଲା ।



ନଈକି ମଣିଷ ଭଲ କରି ଚିହ୍ନିଗଲା । ନଈ ବର୍ଷା ଦିନେ ଫୁଲିଯାଏ । ଇନ୍ଦ୍ର ଚନ୍ଦ୍ର କାହାରିକୁ ମାନେ ନାହିଁ । ତା ଘରଦୁଆର ଭସାଇ ଦିଏ । ବର୍ଷା ଦିନ ସରିଲେ ସୁନା ଝିଅଟିଏ ପରି ଗୀତ ଗାଇ ଗାଇ ଚାଲିଥାଏ ।

ଥରେ ନଈ ତା ଘର ଦୁଆର ଭାଙ୍ଗିଦେଲା । ତା ଚୁଲିକି ହାଣ୍ଡି ଗଲାନାହିଁ, ସେ ଉପାସ ରହିଲା । ପଚାରିଲା—ନଈ, ମୋ ଘର କାହିଁକି ଭାଙ୍ଗିଲୁ ?

ନଈ କହିଲା—ଆଖି ନାହିଁ ମୋ କାନ ନାହିଁ,
ଭାଙ୍ଗି ଦେଲି ମୋର ଦୋଷ ନାହିଁ ।
ଦେଲା ମେଘ ଢାଳି ପାଣି,
ନେଇଗଲି ମୋର ବାପର ଜାଣି ।
ଭାଙ୍ଗିଲା ଘର
ଦୋଷ କାହାର ?
ତୁ ମେଘକୁ ପଚାର ।

ମଣିଷ ମେଘକୁ ପଚାରିଲା—ମେଘରେ ମେଘ, ଢାଳିଲୁ ପାଣି
ନେଇଗଲା ନଈ ବାପର ଜାଣି,
ଭାଙ୍ଗିଲା ଘର
ଦୋଷ ତୋହର ।

ମେଘ କହିଲା—ଆଣିଲା ପବନ ମୋତେ ଟାଣି
କହିଲା ତୁ ଯାଆ ଢାଳି ପାଣି,
ଢାଳିଲି ପାଣି ମୁଁ ନେଲା ନଈ
ତା ସାଙ୍ଗେ ଗଲା ତୋ ଘର ବହି ।
ବିଚାର କର
ଦୋଷ କାହାର ?
ତୁ ପବନକୁ ପଚାର ।



ମଣିଷ ପବନକୁ ପଚାରିଲା—ପବନ ପବନ କଅଣ କଲୁ,
ମେଘକୁ ଇଆଡ଼େ ଟାଣି ଆଣିଲୁ ।
ଢାଳିଲା ପାଣି,
ନେଇଗଲା ନଈ ବାପର ଜାଣି ।
ଭାଙ୍ଗିଲା ଘର
ଦୋଷ ତୋହର ।
ପବନ କହିଲା—ସାଇଁ ସାଇଁ
ମୋଅ ଦୋଷ ଦଉ କାହିଁ ପାଇଁ ?
ଇନ୍ଦର ରଜାର ସେନାପତି
କାମ କରେ, ନାହିଁ ଦିନ ରାତି !

ତା'ର କଥାରେ ଆଣିଲି ମେଘ
ମେଘ ଢାଳେ ପାଣି ଘଅବ ଘବ ।
ନଈ ବାପ ଧନ ବାପକୁ ଦେଲା
ତୋ ଘର ଗଲା ।
ବିଚାର କର
ଦୋଷ କାହାର ?
ତୁ ଇନ୍ଦ୍ରକୁ ପଚାର ।

ମଣିଷ ସେଠଉ ଇନ୍ଦ୍ରକୁ ପଚାରିଲା—
ଇନ୍ଦର ହେ ତମେ ଏ କି କଲ ?
ପବନ ଲଗେଇ ମେଘ ଆଣିଲ ।
ଆଇଲା ମେଘ ତ ଢାଳିଲା ପାଣି,
ନଈ ନଉଥିଲା ବାପର ଜାଣି !
ଦେଖ ମୋ ଘର,
ଭାଙ୍ଗି ରୁଜି ଏବେ ଛିନ ଛତର ।
ମୁଁ କି କରେ ?
ସବୁ ଦୋଷ ଦେବି ତମ ଉପରେ ।

ଇନ୍ଦ୍ର ତ କିଛି ଜବାବ ଦେଲେ ନାହିଁ । ସେବାଟେ ଯାଉଥିଲେ ସୂର୍ଯ୍ୟ । ସେ ମଣିଷ ଆଡ଼କୁ ଅନାଇ କହିଲେ—

ଆରେ ହେ ମଣିଷ, ତୁ ମୋ ପିଲା,
ମୁଁ ଗଢ଼ିବାରୁ ତୋ ଦିହ ହେଲା ।
ତୋ ଭଲ ମନ୍ଦ ମୋତେ ଲଗା,
ମୁଁ କିଆଁ ଦେବି ତୋତେ ଦଗା ?

ସମୁଦ୍ରର ଠାରୁ ଆଣେ ପାଣି
ଲୁଣ ଛାଣି ।
ଇନ୍ଦରକୁ କହେ ଗଢ଼ ମେଘ
ବେଗ ବେଗ ।
ପବନ ହାତରେ ଦିଏ ପଠାଇ
ଢାଳିବା ପାଇଁ ।
ଢାଳଇ ମେଘ ଭୂଇଁରେ ପାଣି
ତୋଅର ଭଲ ।
ଫଳଇ ଫଳ, ପୂରଉ ପେଟ
ବଢ଼େ ଜଙ୍ଗଲ
କାଟଉ କାଠ
ଗଢ଼ୁ ବୋଇତ
ଖୋଳୁ କୋଇଲା
ଚଳାଏ ବୋଇତ ତୋର ସେଇତ ।

ମଣିଷ ଏଥର ଚୁପ୍ ରହିଲା । କହିଲା—କାହାର କିଛି ଦୋଷ ନାହିଁ । ସେ ଏଥର ଭାବିଲା କ'ଣ କଲେ ନଈଠୁ ରକ୍ଷା ପାଇବ । ଭାବୁ ଭାବୁ ଠିକ୍ କଲା ଯେ, ତା ଘର ଯୋଉ ପଟେ ସେ ପଟେ ନଈରେ ବନ୍ଧ ପକାଇଦେବ ।

ସେଇ କଥା କଲା । ନଈକି କହିଲା—

ନଈ ଲୋ ନଈ,
ନଈ କହିଲା—ହୁଁ ।
ପକେଇଦେବି ବନ୍ଧ ।
ନଈ କହିଲା—ହୁଁ ।
ତୁ ଗୁଲିବୁ ଆରପଟେ
ଏ ପଟେ ରହିବି ମୁଁ ।
ନଈ କହିଲା—ହୁଁ ।

ଦେଖିଲା, ନଈ ବନ୍ଧକୁ ଡେଇଁ ଆସିଲା ନାହିଁ । ଦିନେ ଖୁବ୍ ବରଷା ହଉଚି । ମଣିଷକୁ ଖୁବ୍ ନିଦ ଲାଗି ଯାଇଚି । ହଠାତ୍ ନିଦ ଭାଙ୍ଗିଗଲା । ଦେଖିଲା ତା ଘର ଭିତରେ ପାଣି । ନଈ ତା ବନ୍ଧକୁ ଭାଙ୍ଗି ଦେଇଚି । ଆଉ ହବ ନାଇଁ । ଦୋଷ ତ ସେ କାହାକୁ ଦବ ନାଇଁ । ଫେର୍ ଭାବିଲା ଯେ, ନଈକ ବାନ୍ଧିବ ।





କେମିନ୍ତି ବାନ୍ଧବ, କେମିତି ବାନ୍ଧବ ବୋଲି ସେ ଭାବିଲା । ନଈ ଯୁଆଡ଼ୁ ଆସିଚି ସିଆଡ଼ିକି ଗଲା । ଦେଖିଲା ନଈକ କେହି ଅଟକାଇ ପାରିନାହିଁ । ସେ ତଳ ଆଡ଼କୁ ଯେମିତି ହେଲେ ବାଟ କରି ଯିବ । ଯୋଉଠି ତାକୁ କେହି ଆଗୁଳିଚି ସେ ତାକୁ ସେଠଉ ତାଡ଼ି ଫିଙ୍ଗି ଦେଇଚି । ଯୋଉଠି ତାଡ଼ି ପାରି ନାହିଁ ସେଠେଇ ତା ମୁଣ୍ଡ ଉପରକୁ ଚଢ଼ି ଯାଇଚି । ସେ ଦେଖିଲା ଯେ, ନଈକ ଗୋଟାଏ ବାଟ ଦରକାର ।

ହଉ ବାଟ ଦେବ । ହେଲେ ବନ୍ଧ ପକେଇ ତା ବଳ ଅଟକେଇ ଦେବ । ଏଇଆ ଭାବି ସେ ଗୋଟାଏ ଥାନ ଖୋଜିଲା । ଖୋଜି ଖୋଜି ଦେଖିଲା ଠାଏ ନଈ ଆସିଛି, ତା ଦୁ'ପଟେ ଏଡ଼େ ଏଡ଼େ ପାହାଡ଼ ଠିଆ । ଏହି ପାହାଡ଼ର ଶେଷ ଆଡ଼କୁ ବନ୍ଧ ପକାଇଦେବ । ନଈ ଫୁଲି ଫୁଲି ଉଠିବ ଖୁବ୍ ଉପରକୁ । ପାଣି ଲାଗିଯିବ ପାହାଡ଼ ଅଧା ଯାଏଁ ! ଆଣୁ ନଈ ବାପ ଧନ, କେତେ ଆଣୁଚ ଆଣୁ । ସବୁ ଏଇଠି ଅଟକାଇ ଦେବ । ସେଠଉ ତାକୁ ବାଟ ଦେବ । ସେ ଅଳପ-ଧନ ଧରି ଚାଲିବ । ମୋ ଘର ଯାଏଁ ପାଣି ପହଞ୍ଚିବ ନାହିଁ ।

ମଣିଷ ଆଣିଲା କାଠ, ଆଣିଲା ପଥର, ଗୋଡ଼ି, ଆଣିଲା ଚୂନ, ସିମେଣ୍ଟ, ଆଣିଲା ଲୁହା, କୋଇଲା । ଲାଗିଗଲା କାମରେ । ଧୀରେ ଧୀରେ କଡ଼ପଟୁ ବନ୍ଧ ପକାଇ ପକାଇ ଆଣୁଥାଏ । ନଈ ତା ବାଟେ ବାଟେ, ଚାଲିଥାଏ । ଦିନେ ସେ ବାଟ ବି ବନ୍ଦ ।



ଏଡ଼େ ଟାଣ ବନ୍ଧ, ପାହାଡ଼ ଭଳି ଟାଣ । ନଈ ଭାଙ୍ଗିବ କେମିତି ? ଫୁଲିଲା ଖାଲି ରାଗରେ । ପାହାଡ଼ ଅଧାକୁ ପାଣି ଲାଗିଲା । ସେତିକି ଉଚ୍ଚାରେ ମଣିଷ ତା ପାଇଁ ବାଟ ରଖିଥିଲା । ନଈ ସେଇବାଟେ ଓହ୍ଲେଇଲା । ବନ୍ଧ ପଛରେ ଏତେ

ଯାନ୍ତି । ମଣିଷ ଏଥର ସେଇ ପାଣିକୁ ନେଇ ଆପଣା କିଆରିରେ ମଡ଼ାଇଲା । ତା ଖେତ ସାଗୁଆ ହେଲା । ବହୁତ ବହୁତ ଫଳ ଫଳିଲା ।

ଦିନେ ଭାବିଲା—ନଈ ଯୋଉ ବାଟେ ଓହ୍ଲାଉଛି ତାକୁ ସେ ବାଟେ ଯିବାକୁ ଦେବ ନାହିଁ । ସେଠିଉ ସେ କ'ଣ କଲା, ନଈ ପାଇଁ ଗୋଟାଏ ନଳର ବାଟ କଲା । ନଳର ଶେଷ ମୁହଁରେ ଗୋଟାଏ ଚକ ବସେଇ ଦେଲା । ଚକରେ ଡେଣା ଲଗାଇ ଦେଲା । ନଈକୁ କହିଲା—ନଈ ଲୋ ନଈ,




ଏଇ ବାଟେ ବାଟେ ଯା ବହି ।

ନଈର ଆଉ ବଳ କ'ଣ ? ତାକୁ ତ ବାଟ ଲୋଡ଼ା, ସେ ସେଇ ବାଟେ ଓହ୍ଲାଇଲା । ଦେଖିଲା, ତାକୁ ଗୋଟାଏ ଚକର ଡେଣା ବାଟ ଛେକୁଛି । ସେ ଡେଣାଟାକୁ ଘୁଞ୍ଚେଇ ଦେଲା । ଦେଖିଲା ବେଳକୁ ଆଉ ଗୋଟାଏ ଡେଣା, ତାକୁ ଘୁଞ୍ଚାଇ ଦେଲା ବେଳକୁ ପୁଣି ଆଉ ଗୋଟାଏ । ଏମିତି ଘୁଞ୍ଚେଇ ଘୁଞ୍ଚେଇ ସେ ନିଜ ବାଟ କଲା, ଏଣେ ଚକ ଘିରି ଘିରି ହୋଇ ବୁଲିଲା । ଚକ ବୁଲିଲାରୁ ମଣିଷ ତହିଁରେ କଳ ଖଞ୍ଜିଦେଲା । ସେଥିରୁ ବିଜୁଳି ବାହାରିଲା । ବିଜୁଳି ବଳ ସବୁ ବଳଠୁ ବେଶୀ । ତା ବଳରେ ମଣିଷ ଆଲୁଅ ଜାଳିଲା, ପବନ ଘୁରିଲା । ବଡ଼ ବଡ଼ କଳ ଚଳେଇଲା ।



ସେଠଉ କହିଲା——ନଈକି ମୁଁ ପାଣି ପାଇଁ ଯିବ 'ନାଇଁ । ନଈ ଆସି ମୋ ଘରେ ପାଣି ଦେଇଯିବ । ସେଠଉ ବିଜୁଳି ବଳରେ ନଈ ପାଣିକି ଉଞ୍ଚା ଥାନକୁ ଉଠାଇ ନେଲା । ସେଠଉ ନଳରେ ଗୋଟାଏ ବାଟ କରି ନଈକି କହିଲା—

ନଈ ଲୋ ନଈ,
ଏଇ ବାଟେ ବାଟେ ଯା ବହି ।

ନଈ ସେଇ ବାଟେ ବାଟେ ଆସି ମଣିଷ ଘରେ ପହଞ୍ଚିଲା ।

ସେଠଉ ମଣିଷ ଭାବିଲା, ନଈକି ଆଉ କି କାମ ଦବ ? ଭାବୁ ଭାବୁ ତା ମନେ ପଡ଼ିଗଲା ଯେ, ତାର ଖେତ୍ରେ ବଡ଼ ଭୂଇଁକି ବାଲିଅସୁର ମାଡ଼ି ବସିଛି । ତା ନିଶ୍ୱାସରେ ସବୁ ଜଳି ଯାଉଛି । ଇନ୍ଦ୍ର ତାକୁ ଡରୁଛନ୍ତି । ସେ ଯେତେ ମେଘ ପଠଉଛନ୍ତି ଅସୁର ତା ନିଶ୍ୱାସରେ ସବୁ ଶୁଖାଇ ଦଉଛି । ମଣିଷ କ'ଣ କଲା ନା ସେ ଯାଏଁ ନଈ ପାଇଁ ଆଗ ଗୋଟାଏ ବାଟ କରି ଦେଲା । ନଈକି



କହିଲା—ନଈ ଲୋ ନଈ,
ଏଇ ବାଟେ ବାଟେ ଯା ବହି ।

ନଈ ସେଇ ବାଟ ଦେଇ ଦୌଡ଼ିଲା । ତାକୁ ଦେଖି ବାଲି ଅସୁର ତାକୁ ଗିଳିବ ବୋଲି ବସିଲା । ନଈ ତ ପିଲାଦିନେ ଗାତ ଅସୁରୁଣୀକି ମାରିଛି, ବଡ଼ଦିନେ ସେ ବାଲି ଅସୁରକୁ କୋଉ ଡରିବ ! ସେ ମାଡ଼ି ଗଳିଲା । ବାଲିଅସୁର ଘୁଞ୍ଚି ଘୁଞ୍ଚି ଗଲା । ତା ପ୍ରାଣ ଖାଲି ଛଟପଟ ହେଲା । ଯୋଉ ଥାନରୁ ସେ ଘୁଞ୍ଚି ଘୁଞ୍ଚି ଗଲା ସେଠିଇ ମଣିଷ ଗଛ ପତର ଲଗାଇଲା, ଫୁଲ ଫଳ ଫଳାଇଲା ।

ସେଠେଇଙ୍କୁ ଚଢ଼େଇ ଗଲେ, ଗୀତ ଗାଇଲେ । ଯୋଉଠି କାଲ୍ ଖାଁ ଖାଁ ଗୋଡ଼ଉଥିଲା, ଆଜ ସେଠେଇ ଗହଳ ଚହଳ ।

ଏମିତି ନଣ୍ଡ ବନ୍ଧା ହେଲା,
ହାଣ୍ଡିରେ ଭାତ ରନ୍ଧା ହେଲା ।

ନାହାକ କଥା ବେଶ୍,
ମୋ କଥା ଶେଷ୍ ।



ଗ୍ରନ୍ଥସାଥୀ ପ୍ରେସ, କାଳୀଗଳି, କଟକ-୨